# ଜୀବ ଜଗତର ଅଜବ ଗପ



ଶ୍ରୀ ବାସୁଦେବ ମହାପାତ୍ର

# ଜୀବ ଜଗତର ଅଜବ ଗପ

## ଦ୍ୱିତୀୟ ଭାଗ

ଶ୍ରେଷ୍ଠ ଶିଶୁ ସାହିତ୍ୟ ରୂପେ ଓଡ଼ିଶା ସରକାରଙ୍କ ଦ୍ୱାରା ପୁରସ୍କୃତ

ଲେଖକ :
ଶ୍ରୀ ବାସୁଦେବ ମହାପାତ୍ର, ବି. ଏ., ଡି. ଇଡି.
ଜାତୀୟ ପୁରସ୍କାର ପ୍ରାପ୍ତ ଶିକ୍ଷକ



ବିଦ୍ୟା ବୁକ୍ ଷ୍ଟୋର
ବାରିକସ୍ତ, ବ୍ରହ୍ମପୁର, ଗଞ୍ଜାମ

ମୂଲ୍ୟ—ପାଞ୍ଚଟଙ୍କା ମାତ୍ର

ଏଥିରେ ଅଛି—



---

# ଜୀବ ଜଗତର ଅଜବ ଗପ

ଦ୍ୱିତୀୟ ଖଣ୍ଡ


ଲେଖକ—ଶ୍ରୀ ବାସୁଦେବ ମହାପାତ୍ର
ବି. ଏ., ଡ଼ି. ଇଡ଼.



ପ୍ରକାଶକ—ଶ୍ରୀ ଭାସ୍କର ଚନ୍ଦ୍ର ପାତ୍ର
ବିଜୟ ବୁକ୍ ଷ୍ଟୋର, ବ୍ରହ୍ମପୁର

ପ୍ରକାଶ କାଳ—ବୁଦ୍ଧ ପୂର୍ଣ୍ଣିମା, ତା ୯-୫-୧୯୯୦

ମୁଦ୍ରଣ—ତ୍ରିମୂର୍ତ୍ତି ପ୍ରିଣ୍ଟର୍ସ ବ୍ରହ୍ମପୁର-୧

ମୂଲ୍ୟ—ପାଞ୍ଚଟଙ୍କା ମାତ୍ର



# ବଗର ବେକ ଏତେ ଲମ୍ବା କାହିଁକି ?

ତୁମ୍ଭେମାନେ ଦେଖିଥିବ, ବଗର ଦେହ ତୁଳନାରେ ବେକଟା ବେଶୀ ଲମ୍ବା । କିନ୍ତୁ ଆଗେ ତାର ବେକ ଅନ୍ୟ ପକ୍ଷୀମାନଙ୍କ ବେକ ପରି ସାନ ଥିଲା । ଗୋଟିଏ ଘଟଣାରୁ ତାର ବେକଟା ଏତେ ଲମ୍ବା ହୋଇଗଲା ।

ବର୍ଷେ ଭାରି ଟାଣ ଖରା ହେଲା । ଆଷାଢ଼ ମାସରେ ଭୁଇଁରେ ଟୋପାଏ ହେଲେ ପାଣି ପଡ଼ିଲା ନାହିଁ । ଲୋକମାନେ ହାହାକାର କଲେ । ଚଷାମାନେ ମୁଣ୍ଡରେ ହାତ ଦେଇ ବସିଲେ । ଭୁଇଁ ଫାଟି ଆଁ ହୋଇଗଲା । ପିଇବା ପାଇଁ ମଣିଷମାନଙ୍କୁ ପାଣି ଟିକିଏ ମିଳିଲାନି । ପଶୁପକ୍ଷୀଙ୍କ କଥା ପଚାରେ କିଏ ?

ଖରାରେ ପୋଖରୀ, ଗଡ଼ିଆ ସବୁ ଶୁଖି ଯାଇଥିଲା । ଯେଉଁଠାରେ ଟିକିଏ ଟିକିଏ ପାଣି ଥିଲା, କେଉଟମାନେ ମାଛ ମାରି ଶୁଖାଇଦେଲେ । ସେହି ସମୟରେ ପୋଖରୀ ହୁଡ଼ରେ ଥିବା ଗୋଟିଏ ବରଗଛରେ ବଗଟିଏ ବସା କରି ରହିଥିଲା । ପାଣି ଶୁଖି

ଅସିଲା ବେଳକୁ ତାକୁ ବହୁତ ମାଛ ମିଳିଲା । ସେ କେତେ ଦିନ ଖାଇ ପିଇ ମଜାରେ ବୁଲିଲା । ଯେତେବେଳେ ଗ୍ରୀଷ୍ମଆଡ଼େ ଭୂଇଁ ଶୁଖିଗଲା ସେତେବେଳେ ବଗର ଭାବନା ପଡ଼ିଲା । କଅଣ କରିବ ? କେଉଁଠାରୁ ମାଛ ପାଇବ ?

ଦିନକର ଘଟଣା । ସେଦିନ ବଗକୁ କିଛି ଖାଇବାକୁ ମିଳିଲା ନାହିଁ । ଭୋକରେ ତା ପେଟ ଆଟୁ ପାଟୁ ହୋଇ ଯାଉଥାଏ । ପୋଖରୀ ଗାଡ଼ିପାଖେ ଘେରିଏ ବୁଲି ଆସିଲା । କେଉଁଠି ହେଲେ ପାଣି ଦେଖିଲା ନାହିଁ । ମନକୁ ମାରି ବସା ଭିତରେ ରହିଲା । ଦେଖୁଁ ଦେଖୁଁ ସନ୍ଧ୍ୟା ହୋଇଗଲା । ବଗର ପେଟ ଉହୁକ ଝାଳ ହେଲା । ଆଉ କାହାକୁ କହିବ ? ସେମିତି ଭୋକିଲା ପେଟରେ ରାତିଟି କଟାଇଦେଲା ।

ରାତି ଯାଇ ସକାଳ ହେଲା । ଉଡ଼ିବା ପାଇଁ ବଗ ଦେହରେ ଆଉ ବଳ ନ ଥାଏ । ନ ଖାଇଲେ ବସିବା ଜାଗାରୁ ଆଉ ଉଠି ପାରିବ ନାହିଁ । ସେଥିପାଇଁ ସେ ସାହସ ବାନ୍ଧି ପୁଣି ଜାଗା ଖୋଜିବାକୁ ଗଲା । କୋଶେ ବାଟ ଉଡ଼ି ଉଡ଼ି ଗଲା ପରେ ସେ ଗୋଟିଏ ନଈ କୂଳରେ ପହଞ୍ଚିଲା । ନଈରେ ଧାର ନାହିଁ, ଖାଲି ଶୁଖିଲା ବାଲିଗୁଡ଼ାକ । ବିଚରା କଣ କରିବ ? ନଈ କୂଳରେ ପଡ଼ିଥିବା ଖଣ୍ଡେ ପଥର ଉପରେ ହାଲିଆ ହୋଇ ବସି ପଡ଼ିଲା । ଆଉ କ'ଣ କରିବ ବୋଲି ଭାବୁଛି, ହଠାତ୍ ସେଠାରେ ପାଣିରେ ଚବ୍ ଚବ୍ ଶବ୍ଦ ଶୁଣିବାକୁ ପାଇଲା । ସେ ଦେଖିଲା, ପଥରକୁ ଲାଗି ଗୋଟିଏ ଗାତରେ ପାଣି ଅଛି ।

ଶୋଷରେ ତ ବଗର ତଣ୍ଟି ଶୁଖିଯାଉଥାଏ । ପାଣି ପାଇ ତାର ମନ କୁଣ୍ଢେ ମୋଟ ହୋଇଗଲା । ସେ ଆଗ ଅଧ ପେଟ

ପାଣି ପିଇ ଦେଲା । ପେଟଟା ଟିକିଏ ଥଣ୍ଡା ହେବାରୁ ବଗ ଭାବିଲା, ଏଠି ପାଣି ଅଛି, ମାଛ ନିଶ୍ଚୟ ଥିବ । ଏହା ଭାବି ସେ ଧୀର ହୋଇ ଠିଆ ହେଲା । ଗାତରେ ପାଣି ଆଉ ଥରେ ଚବ୍ ଚବ୍ ହେଲା । ବଗ ଜାଣିଲା, ତାର ଶିକାର ଜୁଟିଛି । ସେ ପାଣି ଭିତରକୁ ଖପ୍ କିନା ଥଣ୍ଟ ମାରିଲା । ଏଣେ କ'ଣ ହୋଇଛି ନା, ସେ ଗାତ ଭିତରେ ଗୋଟିଏ ଧଣ୍ଡ ସାପ ଥିଲା । ଗୃରିଆଡ଼େ ପୋଖରୀ ଗଡ଼ିଆର ପାଣି ଶୁଖି ଯିବାରୁ ସେ ସେହି ଗାତରେ ପଡ଼ି ରହିଥିଲା । ତାକୁ ବି ଅନେକ ଦିନ ହେଲା ଆଧାର ମିଳି ନ ଥିଲା । ବଗ ଯିମିତି ସେ ଗାତରେ ଥଣ୍ଟ ପୂରାଇ ଦେଇଛି ସେ ତା ଥଣ୍ଟକୁ ମାଛ ମନେ କରି ପାଟିରେ ଭିଡ଼ି ଧରିଲା । ଏବେ ବଗ ବଡ଼ ହଇରାଣରେ ପଡ଼ିଲା । କେତେ ଜୋରରେ ସେ ତା ଥଣ୍ଟକୁ ଟାଣିଲା । କିନ୍ତୁ ଧଣ୍ଡ ପାଟିରୁ ତାହା ବାହାରିଲା ନି । ଦିହିଁଙ୍କର ଟଣା ଓଟରା ଫଳରେ ବଗର ବେକ ଲମ୍ବା ହୋଇଗଲା । କିଛି ସମୟ ପରେ ଧଣ୍ଡ ହାଲିଆ ହୋଇ ବଗକୁ ଛାଡ଼ିଦେଲା । ବଗ, ଧଣ୍ଡ କବଳରୁ ଉଦ୍ଧାର ହୋଇ ଆସିଲା ସିନା କିନ୍ତୁ ତାର ବେକ ସେହି ଦିନଠାରୁ ଏତେ ଲମ୍ବା ହୋଇ ରହିଯାଇଛି ।





# ସିଂହ କିପରି ପଶୁରାଜ ହେଲା ?

ଆଜିକି ହଜାର ହଜାର ବର୍ଷ ତଳର କଥା । ସେତେବେଳେ ବଣର ଜନ୍ତୁମାନଙ୍କର କେହି ରଜା ନ ଥିଲେ । ସେଥିପାଇଁ କେହି କାହାରିକୁ ଖାତର କରୁ ନ ଥାନ୍ତି । ଯେ ଯାହା ଚାହୁଁଥିଲା, ତାହା କରୁଥିଲା । ବଣ ଭିତରେ ସବୁବେଳେ ଖାଲି ଝଗଡ଼ା, ମାରପିଟ୍ ଲାଗି ରହୁଥାଏ ।

ଏମିତି କିଛି ଦିନ ଗଲା । ଦିନେ ଠେକୁଆ ଆଉ କେତେକ ଜନ୍ତୁଙ୍କୁ ଡାକି କହିଲା—ଦେଖ, ଆମ୍ଭେମାନେ ଆଜିଯାଏଁ ଆମର ରଜା ବାଛିଲେ ନାହିଁ । ସେଥିପାଇଁ ବଣରେ କେହି କାହାରିକୁ ମାନୁ ନାହାନ୍ତି । ଛୋଟ ଜନ୍ତୁମାନେ ବଡ଼ ଦୁଃଖରେ ଅଛନ୍ତି । ଆସ, ଆମର ରଜା ବାଛିବା ।

ଭାଲୁଆ କହିଲା—ହେଉ, ତା'ହେଲେ ଆମର ଗୋଟିଏ ସଭା ଡ଼କାଯାଉ । ସେଠାରେ ଏ କଥା ପକାଇବା ।

ଏ କଥାରେ ଅନ୍ୟମାନେ ରାଜି ହୋଇଗଲେ । ତା ପର ଦିନ ସଭା ଡ଼କାଗଲା । ସଭାରେ ଜନ୍ତୁମାନେ ହାଜର ଥିଲେ । ଏକା ସିଂହ ସେଠାରେ ନଥାଏ । ସମସ୍ତେ ବିଚାର କଲେ—କାହାକୁ ରାଜା କରିବା ? ଶେଷରେ ବିଲୁଆ ଠିଆ ହୋଇ କହିଲା—ଯିଏ ଆମ ସମସ୍ତଙ୍କ ଭିତରେ ସବୁଠାରୁ ବଳୁଆ, ତାକୁ ଆମ ରଜା କରିବା । ସମସ୍ତେ ବିଲୁଆର କଥାକୁ ପସନ୍ଦ କଲେ । କଥା ହେଲା, କିଏ ସବୁଠାରୁ ବଳୁଆ କିମିତି ଜଣାଯିବ ?

ଠେକୁଆ କହିଲା—ମୁଁ ତିନୋଟି ବିଷୟ କହୁଛି । ଯେ ସେଥିରେ ପାରିବ, ସେ ଆମର ରଜା ହେବ । ତାକୁ ଆମେ ଲୋମର ଗୋଟିଏ କେଶର ଉପହାର ଦେବା ।

ପ୍ରଥମ - ଯେ ସବୁଠାରୁ ଅଧିକ ବେଗରେ ଦୌଡ଼ି ପାରିବ ।

ଦ୍ୱିତୀୟ—ଏଇ ବଣ ଭିତରେ ଥିବା ଯୋରର ଏ ପାଖରୁ ସେ ପାଖକୁ ଡ଼େଇଁ ପାରିବ ।

ତୃତୀୟ—ଏତେ ଜୋରରେ ଗର୍ଜନ କରିବ ଯେ, ଗଛରୁ ଆମ୍ବ ଝଡ଼ି ପଡ଼ିବ ।

ଠେକୁଆର ବୁଦ୍ଧିକୁ ସମସ୍ତେ ବାହା ବା କଲେ । ତହୁଁ ଠେକୁଆ କହିଲା ଆଚ୍ଛା, ଭାଇମାନେ, ତୁମ୍ଭମାନଙ୍କ ଭିତରୁ କିଏ କିଏ ରଜା ହେବାକୁ ଇଚ୍ଛା କରୁଛ, ଠିଆ ହୁଅ ।

ପ୍ରଥମେ ହାତୀ ଠିଆ ହେଲା । ତା ପଛକୁ ବାଘ ଠିଆ ହେଲା । ଶେଷରେ ଘୋଡ଼ା ଠିଆ ହେଲା । ଏତିକବେଳେ ସିଂହ କୁଆଡ଼ୁ ବୁଲି ବୁଲି ଆସି ସେଠାରେ ପହଞ୍ଚିଲା । ସେ ମଧ୍ୟ ସଭାର ସବୁ ଖବର ବୁଝି ରଜା ହେବା ପାଇଁ ଠିଆ ହେଲା । ଏହାପରେ ହାତୀ, ବାଘ, ଘୋଡା ଓ ସିଂହ ରଜା ହେବା ପାଇଁ ଠିଆ ହେଲେ ।

ସଙ୍ଗେ ସଙ୍ଗେ ବଳ ପରୀକ୍ଷା କରିବା ପାଇଁ ଠିକ୍ ହୋଇଗଲା । ଭାଲୁଆ ପ୍ରଥମେ ଗୋଟିଏ ଗାର କାଟି ଦେଇ ସମସ୍ତଙ୍କୁ ନେଇ ସେଠାରେ ଠିଆ କରାଇଲା । ଠେକୁଆ 'ଏକ, ଦୁଇ, ତିନି' କହିବାରୁ ଚାରି ଜନ୍ତୁଯାକ ଦୌଡ଼ିଲେ କଥା ହେଲା, ଦୂରରେ ଥିବା ବରଗଛଟିକୁ ଯେ ଆଗେ ଛୁଇଁବ, ସେ ଜିଣିବ । ସବା ଆଗରେ ବାଘ, ତା ପଛରେ ସିଂହ, ତା ପଛରେ ଘୋଡ଼ା ଏବଂ ସବା ପଛରେ ହାତୀ ଦୌଡ଼ୁଥାଏ । ସିଂହ ଦୁଇ ଚାରି କୁଦା ମାରି ବାଘକୁ ଟପିଗଲା । ସେ ଆଗେ ବରଗଛଟିକୁ ଛୁଇଁ ଦୌଡ଼ରେ ପ୍ରଥମ ହେଲା ।

ତାପରେ ଚାରି ଜନ୍ତୁଯାକ ଯୋର ପାଖରେ ପହଞ୍ଚିଲେ । ହାତୀ ଡେଇଁ ଡେଇଁ ଲଥକିନା ଯୋର ଭିତରକୁ ଗଳି ପଡ଼ିଲା । ଘୋଡ଼ା ଯୋର ମଝିଯାଏଁ ଡେଇଁଲା । ବାଘ ଏକା ଡିଆଁକେ ଯୋର ଆର ପାଖରେ ଠିଆ ହେଲା । ସିଂହ ତାର ବାହାଦୁରୀ ଦେଖାଇବା ପାଇଁ ବହୁତ ଉଚ୍ଚକୁ ଡେଇଁ ଯୋର ପାଖରେ ଠିଆ ହେଲା ।

ଏହା ପରେ ସେମାନେ ଆମ୍ବଗଛ ମୂଳକୁ ଗଲେ । ହାତୀ ପେହେଁ କାଳିଲା, ବାଘ ଗର୍ଜନ ଛାଡ଼ିଲା, ଘୋଡ଼ା ହିଁ ହିଁ କଲା । ହେଲେ କାହାରି ରଡ଼ିରେ ଆମ୍ବ ଝଡ଼ିଲା ନାହିଁ । ଶେଷକୁ ସିଂହ ଭୀଷଣ ଗର୍ଜନଟାଏ ଛାଡ଼ିଲା । ସେ ରଡ଼ିରେ ସାରା ବଣ କମ୍ପି ଉଠିଲା । ସାଙ୍ଗେ ସାଙ୍ଗେ ଗଛରୁ ତିନି ଚାରିଟା ଆମ୍ବ ମଧ୍ୟ ଟପ୍ ଟପ ହୋଇ ଖସି ପଡ଼ିଲା ।

ତିନୋଟି ଯାକ ବିଷୟରେ ପ୍ରଥମ ହୋଇ ସିଂହ ରଜା ହେଲା ଓ ଲୋମର କେଶରଟି ପିନ୍ଧିଲା । ନୂଆ ରଜାଙ୍କୁ ସମସ୍ତେ ପାଛୋଟି ନେଲେ । ଭୋଜିଭାତ କରି ଖାଇଲେ । ମୁଁ ଗଲାରୁ କଥା କହିଲେ ନାହିଁ ।





# କୁମ୍ଭୀରର ଜିଭ ନାହିଁ କାହିଁକି ?

କୁମ୍ଭୀରର ଜିଭ ନାହିଁ କହିଲେ ହସ ମାଡ଼େ । ଆଗେ କୁମ୍ଭୀରର ଜିଭ ଥିଲା । ସେ କେମିତି ତା' ଜିଭ ହରାଇଲା, ସେ ବିଷୟରେ ଗୋଟିଏ କୌତୁକିଆ କାହାଣୀ ଅଛି ।

ଗୋଟିଏ ସ୍ଥାନରେ ମସ୍ତବଡ଼ ପୋଖରୀଟାଏ ଥିଲା । ସେହି ପୋଖରୀରେ ଗୋଟିଏ କୁମ୍ଭୀର ଓ ତାର ସ୍ତ୍ରୀ ରହୁଥିଲେ । ପୋଖରୀ କୂଳରେ ଗୋଟିଏ ଜାମୁକୋଳି ଗଛ ଥିଲା । ସେହି ଗଛରେ ଗୋଟିଏ ମାଙ୍କଡ଼ ତା ପିଲାଛୁଆଙ୍କୁ ନେଇ ରହୁଥାଏ ।

ପ୍ରତିଦିନ କୁମ୍ଭୀର ସହିତ ମାଙ୍କଡ଼ର ଦେଖା ହୁଏ । ଏମିତି କିଛି ଦିନ ଗଲା ପରେ କୁମ୍ଭୀର ଓ ମାଙ୍କଡ଼ ମିତ ବସିଲେ । ଦିନକୁ ଦିନ ଦୁହିଁଙ୍କ ଭିତରେ ସ୍ନେହ ବଢ଼ିବାକୁ ଲାଗିଲା । କୁମ୍ଭୀର ପ୍ରତିଦିନ ଗଛମୂଳକୁ ଆସେ । ମାଙ୍କଡ଼ ଜାମୁ ଗଛରୁ ପାଚିଲା ଜାମୁ ପାରିଦିଏ । ମନ ଖୁସିରେ ପେଟେ ଜାମୁ କୋଳି ଖାଇ କୁମ୍ଭୀର ଘରକୁ ଫେରେ ।

କୁମ୍ଭୀର ଦୁଷ୍ଟ ଯେମିତ, ମୂର୍ଖ ମଧ୍ୟ ସେମିତ । ସେ ମନେ ମନେ ଭାବିଲା—ଜାମୁକୋଳଗୁଡ଼ା ତ ଏତେ ମିଠା । ତାହା ସବୁବେଳେ ମାଙ୍କଡ ଖାଉଛି । ତେଣୁ ମାଙ୍କଡ଼ର କଲିଜାଟା କେତେ ମିଠା ହୋଇ ନ ଥିବ ! ମାଙ୍କଡ଼ର କଲିଜା କଥା ଭାବିଲା ବେଳକୁ କୁମ୍ଭୀର ପାଟିରୁ ଟପ୍ ଟପ୍ ହୋଇ ଲାଳ ଗଡ଼ି ପଡ଼ିଲା । ସେ ମାଙ୍କଡ଼ର କଲିଜା ଖାଇବା ପାଇଁ ମନେ ମନେ ଗୋଟିଏ ଉପାୟ ପାଞ୍ଚିଲା ।

ତା ପର ଦିନ କୁମ୍ଭୀର ମାଙ୍କଡ଼କୁ କହିଲା—ମିତ, ତୁମ ମିତଣୀ ତୁମକୁ ଦେଖିବାକୁ ମନ କରୁଛନ୍ତି । ମୋ ଆଗରେ ଚାରି ଛ ଦିନ ହେଲା ଖାଲି ସେଇ କଥା ଘୋଷା ଲଗାଇଛନ୍ତି । ତୁମକୁ କହିବା ପାଇଁ ମୋର ଜମା ମନେ ପଡ଼ୁ ନ ଥାଏ । ଆଜି କେମିତ ମନେ ପଡ଼ିଗଲା । ଚାଲ, ଆମ ଘର ଆଡ଼େ ଟିକିଏ ବୁଲି ଆସିବ ।

ମାଙ୍କଡ଼ କହିଲା—ମୁଁ ପାଣି ଭିତରେ କେମିତ ଯିବି ?

କୁମ୍ଭୀର କହିଲା--ମଲା, ଏଇ ଛାର କଥା ତ ? ତମର ମିତ କଣ ମରିଯାଇଛି କି ? ଆସ, ମୋ ପିଠିରେ ବସ । ଏଇକ୍ଷଣି ମୁଁ ଘରକୁ ନେଇଯିବି ।

ମାଙ୍କଡ଼, କୁମ୍ଭୀର ପିଠିରେ ବସିଲା । ପୋଖରୀ ମଝି ହେବାରୁ କୁମ୍ଭୀର ଭାବିଲା—ମାଙ୍କଡ଼ ଆଉ ଯିବ କୁଆଡ଼େ ? ମରିବ ତ ନିଶ୍ଚୟ । ଏତିକିବେଳେ ମୋ ମନ କଥାଟା ଖୋଲି କହିଦିଏ ।

କୁମ୍ଭୀର କହିଲା—ବୁଝିଲ ମିତ, ଆମ ଘରକୁ ଡାକି ଆଣିଥିଲି ତୁମ କଲିଜାଟା ଖାଇବା ପାଇଁ । ଜାମୁକୋଳି ତ ଏତେ ମିଠା, ତୁମ କଲିଜାଟା କେତେ ମିଠା ହୋଇ ନ ଥିବ ।

ମାଙ୍କଡକୁ ହଠାତ୍ ଗୋଟିଏ ବୁଦ୍ଧି ଦଣିଗଲା । ସେ କହିଲା—ଆହା, ମିତ, ମୋତେ ଆଗରୁ ଟିକିଏ କହିଲ ନାହିଁ । ମୋ କଲିଜାଟି ଗଛର କୋରଡ଼ରେ ଛାଡ଼ି ଆସିଛି । ମୋତେ ସେଠାକୁ ନେଇ ଚାଲ । ତୁମକୁ କଲିଜାଟି ଦେଇଦେବି ।

ମାଙ୍କଡ଼ କଥାକୁ ବିଶ୍ୱାସ କରି କୁମ୍ଭୀର ତାକୁ ଗଛମୂଳେ ଛାଡ଼ି ଦେଇ ଅପେକ୍ଷା କଲା । ମାଙ୍କଡ଼ ଗଛର ଏ ପାଖ ସେ ପାଖ ଖୋଜି ଆସି କହିଲା—ମିତ, କଲିଜାଟା ମୋର ପୁଅ ନେଇ ବୁଲି ଯାଇଛି । କାଲି ଭୋରରୁ ଆସି ନେଇଯିବ ।

କୁମ୍ଭୀର ଚାଲିଗଲା । ମାଙ୍କଡ କୁଆଡ଼ୁ ଗୋଟିଏ ଖଣ୍ଡା ଆଣି ରଖିଲା । ସକାଳ ହେଲାରୁ କୁମ୍ଭୀର ଆସିଲା । ମାଙ୍କଡ଼ କହିଲା—ଦେଖ ମିତ, ମୋ କଲିଜାକୁ ଚାହିଁଲେ ତୁମ ଆଖି ଫୁଟିଯିବ । ତୁମେ ଆଖି ବୁଜି ଜିଭ ବଢ଼ାଇ ଦେବ । ମୁଁ ତୁମ ଜିଭ ଉପରେ ମୋ କଲିଜାକୁ ରଖିଦେଲେ ତୁମେ ତାକୁ ଗିଳିଦେବ ।

କୁମ୍ଭୀର ଆଖି ବୁଜି ଜିଭ ବଢ଼ାଇଲା କ୍ଷଣି: ମାଙ୍କଡ଼ ଖଣ୍ଡାରେ କୁମ୍ଭୀରର ଜିଭଟି କାଟି ପକାଇଲା । କୁମ୍ଭୀର ଖାଲି ଛଟପଟ ହେଲା । ମାଙ୍କଡ଼ କହିଲା—ମୂର୍ଖ ! ତୋର ଦୁଷ୍ଟାମିର ଠିକ୍ ଫଳ ପାଇଛୁ । ତୁଟା ଏଡ଼କ ଓଲୁ ! କଲିଜା କଣ ଗଛ କୋରଡ଼ରେ ଥାଏ ?

ଆଖିର ଲୁହ ଆଖିରେ ମାରି ମନ ଦୁଃଖରେ କୁମ୍ଭୀର ଘରକୁ ଫେରିଲା । ସେହି ଦିନଠାରୁ କୁମ୍ଭୀରର ଜିଭ ନାହିଁ ।





## ବିଲୁଆ କାହିଁକି ପଛକୁ ଅନାଏ ?

ଦିନେ କୁକୁର ଓ ଗଧ ଏକାଠି ବୁଲି ଯାଉଥିଲେ । କୁକୁର କହିଲା—ବୁଝିଲୁ, ଭାଇ, କେତେଦିନ ଏମିତି ବାହା ନ ହୋଇ ରହିଥିବୁ ? ତୋର ଆଗକୁ ପଛକୁ କିଏ ଅଛି ? ଦେହ ବିଗିଡ଼ିଲେ ତୋର କିଏ ସେବା କରିବ ? ତେଣୁ ମୁଁ କହୁଛି, ଶୀଘ୍ର ବିବାହ କର ।

ମନ୍‌ରେ ଲୋଡୁଥିଲା ଯାହା, ବଇଦ ବତାଇଲା ତାହା । ଗଧ ତ ଚାହୁଁଥିଲା, କେଉଁଠି ଶୀଘ୍ର ବାହା କରିବ । କୁକୁରର କଥା ଶୁଣି ତା ଛାତି କୁଣ୍ଢେ ମୋଟ ହୋଇଗଲା । ସେ କହିଲା—ହଉ, ତୁ କହୁଛୁ ଯେତେବେଳେ, ମୁଁ ରାଜି ଅଛି । ହେଲେ କନିଆ ଏକା ତୁ ଠିକ୍ କରିବୁ ।

କୁକୁର କହିଲା—ମଲା, ଏଇ କଥା କ'ଣ ମତେ ବଳେଇଯିବ ?

ସେ କନିଆ ଖୋଜିବାରେ ଲାଗି ପଡ଼ିଲା । ଶେଷକୁ ଗୋଟିଏ ସ୍ଥାନରେ କନିଆ ଠିକ୍ ହେଲା । ତା ରୂପ ଯେମିତି, ଗୁଣ ବି ସେମିତି ଭଲ । କେଉଁ ବିଷୟରେ ଖୁଣି ଦେବାକୁ ନାହିଁ । କନିଆର ବାପା ଗଧ ଦଳର ନେତା, ଦଳପତି ।

ବିବାହ ଦିନ ଠିକ୍ ହେଲା । ଠେକୁଆ ପୁରୋହିତ ହୋଇ ବସିଥାଏ । ହରିଣ, ସମ୍ବର, ଭାଲୁ, ବାଘ, ବିଲୁଆ ଆଦି ଜନ୍ତୁ ସବୁଙ୍କୁ ବାହା ଘରକୁ ଡ଼କାଯାଇଥାଏ । ସେମାନେ ସବୁ ଆସି ଗୋଟିଏ ଜାଗାରେ ଜମା ହେଲେ । ନାନା ପ୍ରକାର ବାଇଦ ବାଜିଲା । ଶୁଭ ଶଙ୍ଖ ବାଜିଲା । ହୁଳହୁଳି ପଡ଼ିଲା । ବର କନିଆଙ୍କୁ ବେଦିକୁ ଅଣାଗଲା । ଠେକୁଆ ପାଟି କରି ମନ୍ତ୍ର ପଢ଼ିଲା । ବର କନିଆଙ୍କ ହାତ ଗଣ୍ଠି ପଡ଼ିଲା ।

ବିଭା ବେଦିରେ ବର କନିଆଙ୍କ ବିଷୟରେ କଥାବାର୍ତ୍ତା ଚାଲିଲା । ଭାଲୁ କହିଲା—ଭଲ ବାହା ଘରଟିଏ ହୋଇଛି । ବର କନିଆ ଦୁହେଁ ଦୁହିଁଙ୍କି ବଳି । ଠିକ୍ ଆମ ପଶୁରାଜ ଓ ତାଙ୍କ ରାଣୀ ପରି ।

ସମ୍ବର କହିଲା—ନ ହେବ କିଆଁ ? ଜାଣଛି, କନିଆ ନିଜେ ଦଳପତିଙ୍କ ଝିଅ । ସେ ପୁଣି ସେମିତି ବର ଦେଖି କରିଛନ୍ତି ନା ।

ଏ କଥା ଶୁଣି ବିଲୁଆ କହିଲା—ଛାଡ଼ ହେ, କେତେ ଫେକଟାକି କହୁଛ । ପଶୁରାଜ, ତାଙ୍କ ରାଣୀ, ଆଉ ଏ ବର କନିଆ । ଛି, ଛି !

ବାଘ କହିଲା—ହଉ, ବାବା, ତୁ ଭାରି ଜାଣିଛୁ । ବିଭା-ବେଦୀରେ କ'ଣ ଏମିତି କହନ୍ତି ? ଆଉ ବକ୍ ବକ୍ କରନା, ଚୁପ୍ ହୋଇ ବସ ।

ବିଲୁଆ କହିଲା—ଚୁପ୍ ହୋଇ ବସିବ ନା ? ହଇ ହେ ବାଘ ମଉସା, କହିଲ ଦେଖି, ଏ ଭଳି କନିଆଁକୁ ବର ଠିକ୍ ହୋଇଛନ୍ତି ? କୁଆଡ଼ୁ ଗୋଟିଏ ଛତରଖିଆ ଆସି ବର ସାଜି ବସିଛି । ଏକେତ ଦରବୁଢ଼ା, ସେଥିରେ ପୁଣି ଆଗ ଗୋଡ଼ର ଆଣ୍ଠୁରେ ଏଡ଼ିକ ଘା, ସବୁବେଳେ ପୂଜ ଗଳୁଛି । ଇଏ କୁଆଡ଼େ ଦଳପତିଙ୍କ ଝିଅର ମନଲାଖି ବର ! ଲାଜ କ'ଣ ଏ ବଣ ଛାଡ଼ି କୁଆଡ଼େ ପଳାଇଲା କି ?

ବିଲୁଆର କଥା ସମସ୍ତେ ଶୁଣିଲେ । କିନ୍ତୁ କେହି କିଛି କହିଲେ ନାହିଁ । କୁକୁର ରାଗି ଯାଇ କହିଲା—ଆରେ ହେ ବିଲୁଆ, ଏମିତ କଣ ପାଗଳାଙ୍କ ପରି ଗପି ଯାଉଛୁ ? ତୋର କ'ଣ ମୁଣ୍ଡ ଠିକ୍ ନାହିଁ ନା କ'ଣ ?

ବିଲୁଆ କହିଲା—ମୋର ମୁଣ୍ଡ ଠିକ୍ ଅଛି ଯେ, ତୋର ମୁଣ୍ଡଟା ବିଗିଡ଼ି ଯାଇଛି । ନ ହେଲେ ଏ ବାହା ଘର ଯୋଗାଡ଼ କରିଥାନ୍ତୁ ନା ? ଏଇ ବରର ବାପ ପରା ଗଲା ସନ କାକୁଡ଼ି ଚୋରାଇ ଥିଲା ଯେ, ତା ବେକରେ କଳା ହାଣ୍ଡି ଗଳାଇ ଦିଆ-ଯାଇଥିଲା । ଏବେ ସେଇ ହାଣ୍ଡିଗଳାର ପୁଅ ।

ଏ କଥା ଶୁଣି ଦଳପତି କହିଲେ—ମୋ ଝିଅକୁ ଏହା ସହିତ ବାହା ଦେବି ନାହିଁ । ଆଜି ବିହାଘର ଭାଙ୍ଗୁ । ଏ କଥା ଶୁଣି ସବୁ ଜନ୍ତୁ ଘୋ ଘା ହୋଇ ବେଦିରୁ ଉଠି ଚାଲିଗଲେ ।

କୁକୁରର ରାଗ ଦେଖେ କିଏ ? ତା' ଆଖି ଦୁଇଟି ନିଆଁ ପରି ଜଳି ଉଠିଲା । ସେ ଏକା ଡ଼ିଆଁକେ ବିଲୁଆ ଉପରେ କୁଦି ପଡ଼ି ତା' ପଛଆଡ଼ୁ ପୁଳାଏ ମାଉଁସ ଦାନ୍ତରେ ଟାଣି

ଆଣିଲା । ବିଲୁଆ ବିଚରା ଉକଟରେ କୁଡ଼ୁ ବୁଡ଼ୁ ହୋଇ ଧାଇଁଲା । କୁକୁର ତା ପଛରେ ଗୋଡ଼ାଇଲା । ବିଲୁଆ ପ୍ରାଣ ଭୟରେ ବଣ ଭିତରେ ଲୁଚିଗଲା । ଖାଲି ସେତିକି ନୁହେଁ, ସେହି ଦିନଠାରୁ ବିଲୁଆ କୁକୁରକୁ ଭାରି ଡରିଲା । ସେ ଯେତେବେଳେ ଚାଲେ, ତା ମନରେ ଛାନିଆ ପଶେ, ପଛଆଡୁ କୁକୁର ଆସିଲା କି ?

ତେଣୁ ବିଲୁଆ ଚାଲିଲାବେଳେ ପଛକୁ ଅନାଏ ।





## ବୁଢ଼ିଆଣୀ ଜାଲ ପାତେ କାହିଁକି ?

ଅନେକ ବର୍ଷ ତଳର କଥା । ଗୋଟିଏ ଦେଶରେ ଜଣେ ରାଜା ଥିଲେ । ସେ ଭାରି ବୀର ଥିଲେ । ତାଙ୍କ ରାଣୀ ଯେପରି ସୁନ୍ଦରୀ, ସେହିପରି ବୁଦ୍ଧିମତୀ ଥିଲେ । ରାଜା ପ୍ରଜାମାନଙ୍କୁ ନିଜର ପୁଅ ପରି ପାଳୁଥିଲେ । ରାଜସଭାରେ ଅନେକ କବି ଓ ପଣ୍ଡିତ ଥାନ୍ତି ।

ଏହିପରି ସୁଖଶାନ୍ତିରେ କିଛି ବର୍ଷ ବିତିଗଲା । ରାଜାରାଣୀଙ୍କର ସବୁ ସୁଖ ଥିଲା । କେବଳ ପିଲାଛୁଆ ନ ହେବାରୁ ସେମାନଙ୍କ ମନରେ ଦୁଃଖ ଥିଲା । ଦିନକୁ ଦିନ ରାଣୀ ପୁଅ ଝିଅ ପାଇଁ ବେଶି ଝୁରିଲେ । ତହୁଁ ରାଜା ଦିନେ ଜ୍ୟୋତିଷଙ୍କୁ ଡ଼କାଇ ଆଣି ପଚାରିଲେ—କହନ୍ତୁ, ମହାଶୟ, ଆମ ଭାଗ୍ୟରେ ପୁଅଝିଅ ଅଛି କି ନାହିଁ ?

ଜ୍ୟୋତିଷ ରାଜା ରାଣୀଙ୍କର କର, କୋଷ୍ଠି, କପାଳ ଦେଖି କହିଲେ— ନା, ଛାମୁଙ୍କ ଭାଗ୍ୟରେ ପୁଅଝିଅ ନାହିଁ । ତେବେ ଦେବତା ଦୟା କଲେ ନିଶ୍ଚୟ ହେବ ।

ରାଜା ମନ୍ତ୍ରୀଙ୍କ ହାତରେ କିଛି ଦିନ ରାଜ୍ୟଭାର ଛାଡ଼ି ରାଣୀଙ୍କୁ ନେଇ ବଣ ଭିତରକୁ ଚାଲିଗଲେ । ବଣ ଭିତରେ ମହାମାୟାଙ୍କ ମନ୍ଦିର ଥିଲା । ସେଠାରେ ରାଜାରାଣୀ ଅଧିଆ ପଡ଼ିଲେ । ନ ଖାଇ ନ ପିଇ ଏକୋଇଶ ଦିନ ବିତିଗଲା । ଶେଷରେ ମହାମାୟାଙ୍କ ଦୟା ହେଲା । ସେ ରାଜାରାଣୀଙ୍କୁ ଉଠାଇ କହିଲେ—ଯାଅ, ତୁମର ଅପୂର୍ବ ସୁନ୍ଦରୀ ଝିଅଟିଏ ହେବ ।

ସତକୁ ସତ କିଛି ଦିନ ପରେ ରାଣୀଙ୍କର ଭାରି ସୁନ୍ଦର ଝିଅଟିଏ ହେଲା । ଝିଅଟି ଚନ୍ଦ୍ରକଳା ପରି ବଢ଼ିବାକୁ ଲାଗିଲା । ସୂତା କଟା ଓ ସିଲାଇ କାମରେ ସେ ଭାରି ଧୁରନ୍ଧର ହେଲା । ଆଖିବାଲ ପରି ସରୁ ସୂତା କାଟି ସେ ରାଜାଙ୍କୁ ଦେଖାଉଥାଏ । ଏହା ଦେଖି ରାଜା ଭାରି ଖୁସି ହେଉଥାନ୍ତି । ରାଜ୍ୟସାରା ଲୋକେ ଜେମାଙ୍କର ଭାରି ପ୍ରଶଂସା କଲେ ।

ଦିନ ଗଡ଼ି ଚାଲିଲା । ଜେମାର ବିବାହ ବୟସ ହେଲା । ତହୁଁ ରାଜା ନିଜେ ଝିଅକୁ ଡ଼ାକି କହିଲେ—ମା', ତୋର ବିବାହ ସମୟ ହେଲାଣି । ତୁ ତୋର ମନଲାଖି ବର ବାଛ ।

ଜେମା ଭଲ ସୂତା କାଟି ଜାଣେ ବୋଲି ମନେ ମନେ ଭାରି ଗର୍ବ କରେ, ଅନ୍ୟ ଆଗରେ ନିଜର ବଡ଼ାଇ କହେ । ରାଜାଙ୍କ କଥା ଶୁଣି ସେ କହିଲା—ସୂତା କଟାରେ ମୋତେ ଯେ ହରାଇଦେବ, ତାକୁ ମୁଁ ବାହା ହେବି । କିନ୍ତୁ ମୋଠୁ ଯିଏ ହାରିବ, ତାର ମୁଣ୍ଡ କଟା ହେବ । ରାଜା ଝିଅ କଥାରେ ରାଜି ହୋଇଗଲେ ।

ଜେମାଙ୍କ ପଣ କଥା ଚାରିଆଡ଼େ ଖେଳିଗଲା । କେତେ ରାଜାପୁଅ ଆସିଲେ । ଜେମାଠାରେ ହାରିଯିବାରୁ ସେମାନଙ୍କ ମୁଣ୍ଡ କଟା

ହେଲା । ଏହିପରି ପ୍ରତି ଦିନ ଦୂର ଦେଶରୁ ରଜାପୁଅମାନେ ଆସୁଥାନ୍ତି, ହାରିଯାଇ ହାଣ ଖାଉଥାନ୍ତି । ଯେଉଁଠାରେ ରଜାପୁଅ-ମାନଙ୍କର ମୁଣ୍ଡ କଟାଯାଉଥାଏ, ସେଠାରେ ରକ୍ତର ନଈ ବହିଗଲା । ଏଣେ କେମାର ଛାତି ଗର୍ବରେ ଫୁଲି ଉଠୁଥାଏ ।

କେମାର ବଡ଼ାଇ ଦେବତାମାନେ ମଧ୍ୟ ସହି ପାରିଲେ ନାହିଁ । ସେମାନେ ଗୋଟିଏ ପରୀକୁ କେମା ପାଖକୁ ପଠାଇଲେ । ପରୀଟି ରଜାପୁଅ ବେଶରେ ଆସି କେମାକୁ କହିଲା—ମୁଁ ସୂତା କଟାରେ ତୁମକୁ ହରାଇବାକୁ ଆସିଛି । ରଜା ପୁଅଟିର ସୁନ୍ଦର ଦେହହେବା ଦେଖି କେମାର ତାକୁ ବାହା ହେବା ପାଇଁ ଇଚ୍ଛା ହେଲା । ତାକୁ ସୂତା କାଟିବାକୁ ଦେଲା ନାହିଁ । କିନ୍ତୁ ରାଜାପୁଅ ଜିଦ୍ ଧରି ବସିଲାରୁ ରାଜି ହେଲା ।

ସୂତା କଟାରେ କେମା ହାରିଲା । ରାଜାରାଣୀ ଖୁସି ହେଲେ । ସାଙ୍ଗେ ସାଙ୍ଗେ କେମାର ବାହା ଘର ଯୋଗାଡ଼ ହେଲା । ବରକନ୍ୟା ବିବାହ ବେଦୀରେ ବସିଲେ । ହାତ ଗଣ୍ଠି ପଡ଼ିଲା । ଠିକ୍ ଏତିକିବେଳେ ଗୋଟିଏ ଧିର ଉଜ୍ଜ୍ୱଳ ଆଲୁଅ ଦେଖାଗଲା । କେମା ବେଦି ଉପରେ ଲୋଟି ପଡ଼ିଲା । ରଜାପୁଅ କୁଆଡ଼େ ଉଭେଇଗଲା । ରଜାପୁଅ ସ୍ଥାନରେ ଗୋଟିଏ ପରୀ ଆସି ଠିଆ ହେଲା । ସେତେ-ବେଳକୁ କେମା ଆଉ କେମା ହୋଇ ନ ଥାଏ, ଗୋଟାଏ କୀଟ ପାଲଟି ଯାଇଥିଲା ।

ରାଜାଙ୍କୁ ପରୀ କହିଲା—ମହାରାଜ, ତୁମ ଝିଅର ବଡ଼ାଇ ଦେବତାମାନେ ବି ସହି ପାରିଲେ ନାହିଁ । ହେଇ ଦେଖ, ତୁମର ଝିଅ କିପରି ଗୋଟିଏ କୀଟ ହୋଇଯାଇଛି । ସେ ସବୁବେଳେ ସୂତା କଟାରେ ଲାଗି ପଡ଼ିବ । ତାର ବଡ଼ାଇର ଫଳ ଏଇଆ ।

ସେ କୀଟଟି କିଏ ତୁମେ କହି ପାରିବ, ପିଲେ ? ସେ ଆମର ଅତି ଜଣାଶୁଣା ବୁଢ଼ିଆଣୀ ମାଉସୀ । ପୂର୍ବ ଜନ୍ମରେ ଅଭିଶାପ ପାଇ ସେ ଆଜି ସୂତା କାଟି ଜାଲ ପାତିବାରେ ଲାଗି ପଡ଼ିଛି ।





# ବାଦୁଡ଼ି କାହିଁକି ମୁଣ୍ଡ ତଳକୁ କରି ଝୁଲି ରହେ ?

ତୁମେ ବାଦୁଡ଼ି ଦେଖିଥିବ । ସେ ମୁଣ୍ଡ ତଳକୁ କରି ଗଛ ଡାଳରେ ଝୁଲି ରହିଥାଏ । ସବୁ ଜୀବଜନ୍ତୁ ଉପରକୁ ମୁଣ୍ଡ ରଖି ଗୋଡ ତଳକୁ ରଖି ଠିଆ ହୁଅନ୍ତି । ତେବେ ବାଦୁଡ଼ି କାହିଁକି ଏପରି ଓଲଟି ଝୁଲି ରହେ ? ଏ ବିଷୟରେ ଗୋଟିଏ ମଜା ଗପ ଅଛି ।

ସେ ଆଜିକି ଅନେକ ଦିନ ତଳର କଥା । ପଶୁରାଜଙ୍କର ଗୋଟିଏ ଅତି ସୁନ୍ଦର ପୋଖରୀ ଥାଏ । ପୋଖରୀ ବନ୍ଧରେ ଧାଡ଼ି ଧାଡ଼ି ହୋଇ ନଡ଼ିଆ ଗଛ ଲାଗିଥାଏ । ପୋଖରୀର ପାଣି କାଚ କେନ୍ଦୁ ପରି ନିର୍ମଳ । ସେଥିରେ ପଦ୍ମ ଫୁଲ ଫୁଟିଥାଏ । ତା ଉପରେ ଯାହାର ଆଖି ପଡ଼ିବ ଘଡ଼ିଏ ଠିଆ ହୋଇ ଚାହିଁବ ।

ଦିନକର କଥା । ଦଳେ ହଂସ କୁଆଡ଼ୁ ଆସି ସେହି ପୋଖରୀ ଭିତରେ ପଶିଲେ । ସେମାନେ ପୋଖରୀର ଏପଟ ସେପଟ ବୁଲି ପଦ୍ମ ନାଡ଼ ଖାଇବାକୁ ଲାଗିଲେ । ପାଣି ଭିତରେ ବୁଡ଼ି ବୁଡ଼ି ପାଣିକୁ ଗୋଳିଆ କରିଦେଲେ । ଭଲୁଆ ଏହା ଦେଖି ପଶୁରାଜଙ୍କୁ ଯାଇ ଜଣାଇଲା । ପଶୁରାଜ ଏହା ଶୁଣି ରାଗରେ ଜଳିଗଲେ । ସେ ସେହିକ୍ଷଣି ଦଶଟି କୁକୁରଙ୍କୁ ଡ଼ାକି ଆଜ୍ଞା ଦେଲେ— ଯାଅ, ମୋର ପଦ୍ମ ପୋଖରୀରେ ଯେଉଁ ହଂସ ସବୁ ଅଛନ୍ତି, ସେମାନଙ୍କୁ ଏଠାକୁ ଧରି ଆଣ । ଆଦେଶ ପାଇବା ମାତ୍ରେ କୁକୁରମାନେ ଦୌଡ଼ିଲେ । ସେମାନେ ହଂସମାନଙ୍କୁ ଚଲାକ୍‌ରେ ପାଖକୁ ଡ଼ାକି ଧରି ପକାଇଲେ । କେବଳ ଦୁଇଟି ହଂସ ସେମାନଙ୍କ ହାବୁଡ଼ରୁ ରକ୍ଷା ପାଇ ଉଡ଼ିଗଲେ । ପଶୁରାଜ ଅନ୍ୟ ହଂସମାନଙ୍କୁ ବନ୍ଦୀ କରି ରଖିଲେ ।

ହଂସ ଦୁଇଟି ଉଡ଼ିଯାଇ ପକ୍ଷୀରାଜ ଗରୁଡ଼ଙ୍କ ନିକଟରେ ହାତ ଯୋଡ଼ି ଜଣାଇଲେ—ମହାରାଜ, ପଶୁରାଜ ଆମ ବଂଶ ବୁଡ଼ାଇଲେ । ଆମକୁ ରକ୍ଷା କର । ଯାହା ଯାହା ଘଟିଥିଲା ସେମାନେ ଗରୁଡ଼ଙ୍କ ଆଗରେ ଗୋଟି ଗୋଟି କରି କହିଗଲେ । ଏହା ଶୁଣି ପକ୍ଷୀରାଜ ରାଗରେ ନିଆଁ ବାଣ ହୋଇଗଲେ । ସେ ପଶୁରାଜଙ୍କ ବିରୋଧରେ ସାଙ୍ଗେ ସାଙ୍ଗେ ଯୁଦ୍ଧ ଘୋଷଣା କଲେ ।

ପଶୁରାଇଜ ଓ ପକ୍ଷୀରାଇଜ, ଦୁଇ ପକ୍ଷରୁ ଯୁଦ୍ଧ ପାଇଁ ସଜବାଜ ଚାଲିଲା । ଯୁଦ୍ଧ ଆରମ୍ଭ ହେଲା । ନାହିଁ ନ ଥିବା ଯୁଦ୍ଧ । ଭୂଇଁରୁ ଧୂଳି ଉଡ଼ି ଆକାଶ ଘୋଟିଗଲା । ପଶୁପକ୍ଷୀଙ୍କର ରଡ଼ିରେ ବଣପାହାଡ଼ ଦୋହଲିଗଲା । ପ୍ରଥମ ଦିନ ପଶୁମାନେ ଜିଣିଲେ । ଏହା ଦେଖି ବାଦୁଡ଼ି ପକ୍ଷୀ ଦଳ ଛାଡ଼ି ପଶୁ ଦଳରେ ଯାଇ ମିଶିଗଲା ।

ତା ପର ଦିନ ପୁଣି ଯୁଦ୍ଧ ହେଲା । ଏଥର ପକ୍ଷୀମାନେ ଜିଣିଲେ । ସେମାନେ ଆନନ୍ଦରେ ଡେଇଁଲେ । କିଣ ଦେବତା ଭଳି ଲୋକ ହୋଇ ପଶୁ ପକ୍ଷୀମାନଙ୍କ କଳିର ମୀମାଂସା କରିଦେଲେ ।

ବାଦୁଡ଼ି ପୁଣି ପକ୍ଷୀ ଦଳକୁ ଫେରି ଆସିଲା । ମାତ୍ର ତାକୁ କେହି କଥା କହିଲେ ନାହିଁ । ଶେଷକୁ ବାଦୁଡିର ବିଚାର ହେଲା । ସବୁ ପକ୍ଷୀ ଗରୁଡ଼ଙ୍କୁ କହିଲେ ମହାରାଜ, ଏଟା ଆମ ଦଳର ଶତ୍ରୁ । ଆମେ ହାରିଗଲାବେଳେ ଏ ଯାଇ ପଶୁ ଦଳରେ ମିଶି ଯାଇଥିଲା । ଏହାକୁ ଠିକ୍ ଦଣ୍ଡ ଦିଆଯାଉ । ଏ କଥା ଶୁଣି ଗରୁଡ ବାଦୁଡ଼ିକୁ ବହୁତ କଟୁ କଥା କହିଲେ । ଅନ୍ୟ ପକ୍ଷୀମାନେ ମଧ୍ୟ ତାକୁ କେତେ ଛି, ଛାକର କରି ଗାଳି ଦେଲେ । ତାକୁ ଭାରି ଲାଜ ଲାଗିଲା । ସେ ନିଜେ ଅବିଶ୍ୱାସ କାମ କରିଥିବାରୁ ଅନ୍ୟ ପକ୍ଷୀମାନଙ୍କ ଆଗରେ ମୁଣ୍ଡ ଟେକି ପାରିଲାନି ।

ପକ୍ଷୀରାଜ ଗରୁଡ଼ ତାକୁ କହିଲେ—ଦେଖ୍, ବାଦୁଡ଼ି, ତୁ ଭାରି ବଦମାସ୍ । ତୁ ବିଶ୍ୱାସଘାତକ । ତେଣୁ ତୋତେ ଆଜି ଏହି ଦଣ୍ଡ ଦିଆଗଲା । ତୁ ସବୁବେଳେ ମୁଣ୍ଡ ତଳକୁ କରି ଗଛ ଡ଼ାଳରେ ଝୁଲି ରହ । ବାଦୁଡ଼ି ମୁଣ୍ଡ ନୁଆଇଁ ରାଜାଙ୍କ ଆଦେଶ ମାନି ନେଲା ।

ସେହି ଦିନଠାରୁ ବାଦୁଡ଼ି ମୁଣ୍ଡ ତଳକୁ କରି ଝୁଲି ରହିଛି ।





# କାଉ କାହିଁକି ଟେରେଇ ଚାହେଁ ?

ପୂର୍ବ କାଳରେ ଅଯୋଧ୍ୟାରେ ଦଶରଥ ବୋଲି ଜଣେ ରାଜା ଥିଲେ । ତାଙ୍କର ବଡ଼ ପୁଅର ନାଁ ରାମ । ଯୁବରାଜ ରାମ ଦଇବ ଯୋଗକୁ ବନବାସ କଲେ । ତାଙ୍କ ସାଙ୍ଗରେ ତାଙ୍କର ସ୍ତ୍ରୀ ସୀତା ଓ ସାନ ଭାଇ ଲକ୍ଷ୍ମଣ ବଣକୁ ଗଲେ । ସେମାନେ ଚିତ୍ରକୂଟ ବଣରେ ଥାନ୍ତି । ପତ୍ର କୁଡ଼ିଆରେ ରହି, ବଣର ଫଳମୂଳ ଖାଇ, ଝରଣା ପାଣି ପିଇ ସେମାନେ ଆନନ୍ଦରେ ରହିଲେ ।

ସୀତା ଭାରି ସୁନ୍ଦରୀ ଥିଲେ । ତାଙ୍କର ଗୁଣ ବି ସେହିପରି ଭଲ ଥିଲା । ଲକ୍ଷ୍ମଣ ଭାଇ ଭାଉଜଙ୍କର ସେବା କରୁଥିଲେ । ଏହିପରି କିଛି ଦିନ ବିତିଗଲା ।

ଦିନକର ଘଟଣା । ସୀତା ତାଙ୍କର କୁଡ଼ିଆ ଆଗରେ ବୁଲୁଥାନ୍ତି । ଏତିକିବେଳେ ସ୍ୱର୍ଗର ରାଜା ଇନ୍ଦ୍ରଙ୍କ ପୁଅ ଜୟନ୍ତ ଆକାଶରେ

ଉଠ ବାହ୍ଲ ନେଉଥିଲା । ସୀତାଙ୍କର ରୂପ ଦେଖି ସେ ଚମକି ପଡ଼ିଲା । ଜୟନ୍ତ ଭାରି ଦୁଷ୍ଟ ଥିଲା । ସ୍ୱର୍ଗର ରଜାଙ୍କ ପୁଅ, ଭାରି ଗେଲବସରରେ ବଢ଼ିଥାଏ । ତେଣୁ ତାର କାହାରିକି ଡ଼ର ନ ଥାଏ । ସୀତାଙ୍କୁ ଦେଖି ସେ ସେତିକିବେଳେ ଗୋଟିଏ କାଉ ରୂପ ଧରି ଉଡ଼ି ଆସି କୁଡ଼ିଆ ଚାଳ ଉପରେ ବସିଲା । ତା ପରେ ସେ ହଠାତ୍ ଉଡ଼ି ଆସି ସୀତାଙ୍କ ଉପରେ ଝାମ୍ପ ଦେଲା । ତାଙ୍କ ଦେହକୁ ଖୁମ୍ପି ପୁଣି ଯାଇ ଚାଳ ଉପରେ ବସିଲା । ଚାଳ ଉପରୁ ଉଡ଼ି ଆସି ଆଉ ଥରେ ସୀତାଙ୍କୁ ଖୁମ୍ପି ଉଡ଼ିଗଲା ।

ଏଣେ ସୀତାଙ୍କର ଦେହରୁ ଝର ଝର ହୋଇ ରକ୍ତ ବହିଲା । ସେ ବିକଳରେ ରାମଙ୍କୁ ଡ଼ାକି ପକାଇଲେ । ରାମ ଦଉଡ଼ି ଆସି ଦେଖିଲେ ସୀତାଙ୍କର ଦେହରୁ ଝର ଝର ହୋଇ ରକ୍ତ ବହୁଛି । କ'ଣ ହେଲା ବୋଲି ସେ ସୀତାଙ୍କୁ ପଚାରିଲେ । ସୀତା ସବୁ କଥା ବୁଝାଇ କହିଲେ । ତାହା ଶୁଣି ରାମଙ୍କ ମୁହଁ ରାଗରେ ଲାଲ ହୋଇଗଲା । ସେ ସାଙ୍ଗେ ସାଙ୍ଗେ ଧନୁଶର ଉଠାଇ ଧନୁର ଗୁଣକୁ କାନ ଯାଏଁ ଟାଣି ଧରିଲେ । ତା ପରେ କି ମନ୍ତ୍ର ପଢ଼ି ଶରକୁ ଆଦେଶ ଦେଲେ—ଯା' ଦୋଷୀକୁ ମାର ।

ରାମଙ୍କ ଆଦେଶ ପାଇ ଶରଟି ପବନ ବେଗରେ ଛୁଟିବାକୁ ଲାଗିଲା । କାଉ ଆଗରେ ଉଡ଼ୁଛି, ଶର ପଛରେ ଗୋଡ଼ାଉଛି । କାଉ ପଛକୁ ଚାହିଁ ଦେଖିଲା, ତାର ଆଉ ରକ୍ଷା ନାହିଁ । ବିଜୁଳି ବେଗରେ ମାଡ଼ି ଆସୁଛି ଶର । ଶର ମୁନରେ ଦାଉ ଦାଉ ହୋଇ ନିଆଁ ଜଳୁଛି । ସାତ ସମୁଦ୍ର ତେର ନଈ ପାର ହୋଇ କାଉ ଉଡ଼ି ଚାଲିଛି, ଶର ତା' ପଛରେ ଗୋଡ଼ାଇଛି । କାଉ ମନେ ମନେ

କେତେ ଦିଅଁ ଦେବତାଙ୍କୁ ଡାକିଲା । ହେଲେ କିଏ ତାର ଡାକ ଶୁଣିଲେ ନାହିଁ । କେହି ତାକୁ ରକ୍ଷା କରି ପାରିଲେ ନାହିଁ । ଶେଷକୁ ହାଲିଆ ହୋଇ ସେ ସୀତାଙ୍କ ପାଖକୁ ଆସି ତାଙ୍କ ଗୋଡ଼ ତଳେ 'ଲମ୍ବ ହୋଇ 'ପଡ଼ିଗଲା । କାଉ କହିଲା—ମା' ମୋର ଦୋଷ ହୋଇଛି, ରକ୍ଷାକର । ମୁଁ ଇନ୍ଦ୍ର ରାଜାଙ୍କ ପୁଅ ଜୟନ୍ତ । ମୋତେ କ୍ଷମା ଦିଅ ।

ସୀତା କାଉର ବିକଳ ସହି ପାରିଲେ ନାହିଁ । ସେ ରାମଙ୍କୁ କହିଲେ—ହଉ ଛାଡ଼, ତାର ଦୋଷ ସେ ମାନି ନେଉଛି । ତାକୁ ଆଉ ମାରନାହିଁ ।

ରାମ କହିଲେ—ତୁମେ ବୁଝୁନା ସୀତା, ମୋର ଏ ଶର କଦାପି ବିଫଳ ହୋଇ ଫେରି ଯିବ ନାହିଁ । ସେ ଜୟନ୍ତକୁ କହିଲେ—ଦେଖ୍, ତୁ କାଉ ବେଶରେ ସୀତାଙ୍କୁ ଖଣ୍ଡିଆଖାବୁଡ଼ା କଲୁ । ତେଣୁ ଏ ଶର ତୋର ଆଖିକୁ ବିଦ୍ଧ କରିବ । ଦୟା କରି ତୋତେ ନ ମାରି ଛାଡ଼ି ଦେଲି ।

ଚାହୁଁ ଚାହୁଁ ଶର ଆସି କାଉର ଆଖିକୁ ବିଦ୍ଧ କଲା । ସେ ଟେରା ହୋଇଗଲା । ସେ ଆଉ ଆଗ ପରି ସିଧା ସଳଖ ନ ଚାହିଁ ଖାଲି ବଙ୍କେଇ ଚାହିଁଲା ।

ସେହି ଦିନଠାରୁ କାଉ ଟେରେଇ ଚାହିଁ ଆସୁଛି ।





# ବିରାଡ଼ି କାହିଁକି ମୂଷାକୁ ମାରି ଖାଏ ?

ବହୁତ ପୁରୁଣା କାଳର କଥା । ସେତେବେଳେ ବିରାଡ଼ି ଓ ମୂଷା ଭାରି ସାଙ୍ଗ ଥିଲେ । ବିରାଡ଼ି ଆମିଷ କମା ଖାଉ ନ ଥିଲା । ମୂଷା ଗାତରେ ରହୁ ନ ଥିଲା । ଦିହିଙ୍କର ବସା ଲଗା ଲଗି ହୋଇଥିଲା । ମୂଷା କୁଆଡ଼େ ଗଲେ ବିରାଡ଼ି ପାଖରେ ତା' ଛୁଆଙ୍କୁ ଛାଡ଼ି ଦେଇ ଯାଉଥିଲା । ବିରାଡ଼ି ବି ମୂଷା ପାଖରେ ତା' ଛୁଆଙ୍କୁ ଛାଡ଼ି ଅନ୍ୟ ଆଡ଼େ ଯାଉଥିଲା । ବିରାଡ଼ିର ଫେରିବା ଡେରି ହେଲେ ମୂଷା ଯେପରି ଆକୁଳ ହେଉଥିଲା, ମୂଷା ଠିକ୍ ସମୟରେ ବସାକୁ ନ ଫେରିଲେ ବିରାଡ଼ି ସେମିତି ଭାରି ବ୍ୟସ୍ତ ହେଉଥିଲା । କେହି କାହାରିକୁ ଘଡ଼ିଏ ନ ଦେଖିଲେ ରହି ପାରୁ ନ ଥିଲେ । ଜଣେ ଯାହା ଆଣୁଥିଲା, ଦି ଭାଗ କରି ବାଣ୍ଟି ନେଉଥିଲେ ।

ଏମିତି କିଛି ଦିନ ଗଲା । ଥରେ ସେହି ବଣରେ ଭାରି ଅକାଳ ପଡ଼ିଲା । ବର୍ଷା ଦିନେ ଭୂଇଁ ଉପରେ ପାଣି ଟୋପାଏ ପଡ଼ିଲା ନାହିଁ । ସବୁବେଳେ ଖାଲି ଟାଇଁ ଟାଇଁ ଖରା ମାଇଲା । ଖରାରେ ଗଛ ପତ୍ର ସବୁ ଝାଉଁଳି ପଡ଼ିଲା । ଧାନ, ବାଜରା ଗଛ କାଁ। ଭାଁ ଦେଖାଗଲା । ହେଲେ ସବୁଆଡ଼େ ଭୂଇଁ ଖାଲି ପଡ଼ିଆ ରହିଲା । ଅନ୍ୟ ଜନ୍ତୁମାନେ ସେ ବଣ ଛାଡ଼ି ଚାଲିଗଲେ । ବିରାଡ଼ି ଓ ମୂଷା କୁଆଡ଼େ ନ ଯାଇ ନିଜ ନିଜ ବସାରେ ପଡ଼ି ରହିଲେ ।

ମୂଷାର ସାତଟି ଛୁଆ, ବିରାଡ଼ିର ତିନିଟି ଛୁଆ । ବିରାଡ଼ି ଘରେ ଯେତିକି ଖାଦ୍ୟ ଦରକାର, ମୂଷା ଘରେ ବି ସେତିକି ଦରକାର ହେଉଥିଲା । ଅଭାବ ପଡ଼ିବାରୁ ଦୁଇ ପରିବାର ବଡ଼ ଅସୁବିଧାରେ ପଡ଼ିଲେ ।

ଦିନକର ଘଟଣା । ମୂଷା ଆହାର ଆଣିବା ପାଇଁ ଯାଇଥାଏ । ବିରାଡ଼ି ଦୁଇ ଘର ଜଗି ବସିଥାଏ । ତା ପୂର୍ବ ଦିନ ବିରାଡ଼ି ଆହାର ଆଣିବାକୁ ଯାଇ ଖାଲି ହାତରେ ଫେରି ଆସି-ଥିଲା । ସେ ଦିନ କାହାକୁ ଖାଇବାକୁ ମିଳି ନ ଥିଲା । ତେଣୁ ଛୁଆସବୁ ଡହଳ ବିକଳ ହେଉଥାନ୍ତି । ସମସ୍ତେ ମୂଷାର ଆସିବା ବାଟକୁ ଅନାଇ ବସିଥାନ୍ତି ।

ମୂଷାର ଭାଗ୍ୟ ଭଲ । ସେ ଦିନ ସେ ଗୁଡ଼ାଏ ବାଜରା ପାଇଲା । ସେ ଭାବିଲା—ଏହାକୁ ଅଧା ଅଧା କରି ବାଣ୍ଟି ଦେଲେ, ମୋର ଛୁଆମାନେ ଆଜି ସବୁ ଖାଇଯିବେ । କାଲି ପାଇଁ ତ ଆଉ କିଛି ରହିବ ନାହିଁ, ଉପାସ ରହିବାକୁ ପଡ଼ିବ ।

ଏହା ଭାବ ମୂଷା ଗୋଟିଏ ଗଛ ମୂଳରେ ଅଧେ ବାଜରା ଲୁଚାଇ ରଖିଦେଲା । ବାକୀ ଅଧକ ଆଣି ଦୁଇ ଭାଗ କରି ଭାଗେ ବିରାଡ଼ିକୁ ଦେଲା । ବିରାଡ଼ି ଖାଉଥିଲାବେଳେ ସେ ଗଛ ମୂଳରୁ ବାକୀ ଅଧକ ବାଜରା ନିଜ ଘରକୁ ନେଇ ଆସିଲା । ମୂଷାଛୁଆମାନେ ପେଟେ ପେଟେ ଖାଇ ଆରାମରେ ବୁଲିଲେ । ବିରାଡ଼ି ଛୁଆଙ୍କୁ ବାଜରା ଅଣ୍ଟିଲା ନାହିଁ । ଅଧା ପେଟ ଖାଇ ପାଣି ପିଇ ରହିଲେ ।

ଉପର ଓଳି ମୂଷା ଛୁଆମାନେ ବିରାଡ଼ି ଘରକୁ ବୁଲିଗଲେ । ବଡ଼ ମୂଷା ଛୁଆ କହିଲା—ବିରାଡ଼ି ମାଉସୀ, ଏତେ ଦିନକେ ଆଜି ଆମକୁ ପେଟପୂରା ଖାଇବାକୁ ମିଳିଲା । କାଲିର ଯେଉଁ କଷ୍ଟ, କ'ଣ କହିବି ?

ବିରାଡ଼ି ପଚାରିଲା—ଆଜି କେମିତି ପେଟପୂରା ଖାଇଲକି ? ଆମକୁ ତ ଅଣ୍ଟିଲା ନାହିଁ ।

ମୂଷା ଛୁଆର ଅକଲ ବା କେତେ ? ସେ କହିଲା—କାହିଁକି, ମା ପରା ଆଜି ପାଇଁ ଦୁଇ ଥର ବାଜରା ଆଣିଥିଲା । ଆମେ ଖାଇ ବସିଥିଲୁ, ଗୋଟିଏ ଗଛ ମୂଳରୁ ପୁଣି କେତେ ନା କେତେ ବାଜରା ନେଇ ଆସିଲା । ଆହୁରି କେତେ ବାଜରା ଆମେ କାଲି ପାଇଁ ରଖିଛୁ ।

ବିରାଡ଼ି ସବୁ କଥା ବୁଝିଗଲା । ତା ଅଜଣାରେ ମୂଷା ନିଜ ଛୁଆଙ୍କ ପାଇଁ ଆହାର ସାଇତି ରଖିଥିଲା । ସେ ମୂଷା ଘରକୁ ଦୌଡ଼ି ଯାଇ ମୂଷା ଉପରେ କୁଦି ପଡ଼ି ତାର ମୁଣ୍ଡକୁ ଚୋବାଇ

ଖାଇଗଲା । ସେତିକିରେ ତାର ମନ ଅଣ୍ଟା ହେଲା ନାହିଁ । ସେ ମୂଷାର ଦେହକୁ ବି ଚିକି ଚିକି କରି ଚୋବାଇ ଖାଇଦେଲା । ମୂଷାଙ୍କୁଆମାନେ ପ୍ରାଣ ଭୟରେ ଗୋଟିଏ ଗାତ ଭିତରେ ପଶିଗଲେ ।

ସେ ଦିନର ରାଗ ବିରାଡ଼ି ମନରୁ ଆଜି ପର୍ଯ୍ୟନ୍ତ ଯାଇନି । ମୂଷାକୁ ଦେଖିଲା ମାତ୍ରେ ସେ ତାକୁ ମାରି ଖାଇଯାଏ ।





# ପେଚା କାହିଁକି ରାତି ହେଲେ ପଦାକୁ ବାହାରେ

ପେଚା ଦିନସାରା ନିଜ ବସା ଭିତରେ ଥାଏ । ରାତି ହେଲେ ପଦାକୁ ବାହାରେ । ଦିନରେ ସେ ପଦାକୁ ବାହାରେ ନାହିଁ । ଦିନର ଆଲୋକରେ ଉଡ଼ି ବୁଲିବା କେମିତି ମଜା ! ତେବେ ପେଚା କାହିଁକି ଦିନରେ କୋରଡ଼ ଭିତରେ ଲୁଚି ରହେ, ଏ ବିଷୟରେ ଗୋଟିଏ କୌତୁକିଆ କାହାଣୀ ଅଛି ।

ଥରେ ସିଂହର ଦେହ ବିଗିଡ଼ିଲା । ତାର ଗୋଡ଼ରେ ଗୋଟିଏ ବଥ ଉଠି ଭାରି କଷ୍ଟ ଦେଲା । ସିଂହକୁ ରାତିରେ ନିଦ ମାଡ଼ିଲା ନାହିଁ କି ଦିନରେ ଖାଇବାକୁ ଇଚ୍ଛା ହେଲା ନାହିଁ । ବଥର ପୀଡ଼ା ଯୋଗୁଁ ଦିନ ରାତି ସିଂହ ଖାଲି ଗାଁ ଗାଁ ରଡ଼ି ଛାଡ଼ିଲା ।

ରଜାଙ୍କ ଦେହ ଖରାପ । ପଶୁ ରାଇଜରେ ହଇଚଇ ପଡ଼ିଗଲା । କେତେ ପ୍ରକାର ଔଷଧ ଦିଆଗଲା । କିନ୍ତୁ କେଉଁଥିରେ ହେଲେ ପୀଡ଼ା କମିଲା ନାହିଁ । ପଶୁରାଜ ରାଜ୍ୟସାରା ଢେଣ୍ଡୁରା ଦେଲେ—ଯେ ରାଜାଙ୍କ ବଥ ଭଲ କରିଦେବ, ତାକୁ ରଜା ଖଣ୍ଡେ ରାଜ୍ୟ ଦେବେ ।

ପକ୍ଷିରାଜ ଗରୁଡ଼ ପଶୁରାଜଙ୍କ ଦେହ ଖରାପ ଥିବା ଖବର ଶୁଣି ତାଙ୍କୁ ଦେଖିବାକୁ ଆସିଲେ । ତାଙ୍କ ସାଙ୍ଗରେ ଅନ୍ୟ ପକ୍ଷିସବୁ ଆସିଥାନ୍ତି । ପଶୁମାନେ ବି ସେଠାରେ ଥାନ୍ତି ।

ପଶୁରାଜ କହିଲେ—ବଥର ପୀଡ଼ା କମୁନାହିଁ । ମୋର ଦେହ ଦିନକୁ ଦିନ ଦୁର୍ବଳ ହୋଇଯାଉଛି । ଏମିତି ଯଦି ଆଉ ବେଶୀ ଦିନ ପୀଡ଼ା ରହେ, ମୁଁ ଆଉ ବଞ୍ଚିବି ନାହିଁ । ଆପଣମାନଙ୍କ ଭିତରୁ ଯଦି କେହି ମୋର ବଥ ଭଲ କରିଦେଇ ପାରିବେ, ମୁଁ ତାଙ୍କୁ ଉପଯୁକ୍ତ ପୁରସ୍କାର ଦେବି ।

ପଶୁରାଜଙ୍କ କଥା ଶୁଣି ସମସ୍ତେ ଚୁପ୍ ହେଲେ । କେବଳ ନେଉଳ ଠିଆ ହୋଇ କହିଲା—ମହାରାଜ, ମୁଁ ଭଲ କରିଦେବି । କାଲି ଆସି ମୁଁ ଆପଣଙ୍କର ବଥର ଚିକିତ୍ସା କରିବି ।

ଏତିକିବେଳେ ପେଚା ଭାବିଲା—ନେଉଳ ଘରେ ବଥ ପାଇଁ ଭଲ ଔଷଧ ନିଶ୍ଚୟ ଥିବ । ମୁଁ ଯଦି ତାହା ଆଗରୁ ନେଇ ଆସିବି, ତେବେ ମୋର ବଡ଼ ନାଁ ହୋଇଯିବ । ସମସ୍ତେ ମୋତେ ବାହାବା କରିବେ, ପୁରସ୍କାର ବି ମିଳିଯିବ ।

ପେଚା କହିଲା—ମହାରାଜ, ମୁଁ ବୁଥର ଠିକ୍ ଔଷଧ ଜାଣିଛି । ଆପଣ କିଛି ଚିନ୍ତା କରନ୍ତୁ ନାହିଁ । ଆଜି ରାତିରେ ମୁଁ ଆପଣଙ୍କର ବଥ ଭଲ କରିଦେବି ।

ପଶୁରାଜଙ୍କ ପାଖରୁ ସବୁ ପଶୁ ପକ୍ଷୀ ବିଦାୟ ନେଇ ଚାଲିଗଲେ । ପେଚା ଭାବିଲା, କିମିତି ନେଉଳ ଘରୁ ଔଷଧ ଆଣିବି । ନେଉଳ ନିଜ ଛୁଆଙ୍କୁ ନେଇ ପଦାକୁ ବୁଲି ଯାଇଥିଲା । ପେଚା ବେଳ ଉଣ୍ଡି ନେଉଳ ବସାରେ ପଶିଲା । ଦେଖିଲା, ଗୋଟିଏ ଜାଗାରେ କିଛି କିଛି ଚେର ମୂଳ ସବୁ ଥୁଆ ହୋଇଛି । ସେ ମନେ ମନେ ଭାରି ଖୁସି ହେଲା । ଯାହା ହେଉ ସେ ଠିକ୍ ଜିନିଷ ପାଇଛି ।

ପେଚା ଉଡ଼ି ଉଡ଼ି ଆସି ପଶୁରାଜଙ୍କ ଉଆସରେ ପହଞ୍ଚିଲା । ସେ ଆଣିଥିବା ଚେରଟିକୁ ଦେଇ କହିଲା—ଏହାକୁ ବାଟି ବଥ ଉପରେ ବୋଳି ଦିଅନ୍ତୁ । ବଥ ସାଙ୍ଗେ ସାଙ୍ଗେ ଭଲ ହୋଇଯିବ । ଏହା କହି ସେ ନିଜ ବସାକୁ ଚାଲିଗଲା ।

ଔଷଧ ଦିଆଗଲା । କିନ୍ତୁ ତାହା ଦେବାରୁ ବଥର ପୀଡ଼ା ଆହୁରି ବଢ଼ିଗଲା । ପଶୁରାଜ ଖାଲି ଭୂଇଁରେ ଗଡ଼ିବାକୁ ଲାଗିଲେ । ବିକଳରେ ଭାରି ଜୋରରେ ରଡ଼ି ଛାଡ଼ିଲେ । ଏହା ଦେଖି ରାଣୀ ନେଉଳକୁ ଡ଼କାଇ ଆଣି ପେଚା ଦେବା ଔଷଧ କଥା କହିଲେ । ନେଉଳ ଜାଣି ପାରିଲା ଯେ ପେଚା ତା' ଘରୁ ବିଷ ଚେର ଚୋରାଇ ଆଣି ଦେଇଛି । ସେ ସେହିକ୍ଷଣି ଦୌଡ଼ି ଯାଇ ପୋଖରୀରୁ ଗୋଟିଏ ବଡ଼ ଜୋକ ନେଇ ଆସିଲା । ବଥ ଉପରେ ଜୋକଟିକୁ ଲଗାଇଦେଲା । ଅଳ୍ପ ସମୟ ଭିତରେ ଜୋକଟି

ବଥର ମଇଲା ରକ୍ତ ଶୋଷି ନେଇଗଲା । ବଥର ପୀଡ଼ା କମିଗଲା । ତା ପର ଦିନ ବଥ ପୂରା ଭଲ ହୋଇଗଲା ।

ଦିନେ ପଶୁ ପକ୍ଷୀଙ୍କର ଗୋଟିଏ ସଭାରେ ନେଉଳ ପେଚାର କାରସାଦି ବୁଝାଇ କହିଲା । ପେଚା ସେଠାରେ ଥିଲା । ସେ ଲାଜରେ କାହାକୁ ମୁହଁ ଦେଖାଇ ପାରିଲା ନାହିଁ । ଦିନରେ ସେ ଆଉ ପଦାକୁ ବାହାରିଲା ନାହିଁ ।

ସେଥିପାଇଁ ପେଚା ରାତି ହେଲେ ପଦାକୁ ବାହାରେ ।





## ବରାଡ଼ କାହିଁକି ବାଘ ପରି ଦଶେ ?

କୋଉ କାଳର କଥା । ସେତେବେଳେ ବିଲେଇ ବୋଲି ଗୋଟିଏ ପଶୁ ନ ଥିଲା । ଆଜିକାଲି ଆମେ ଘରେ ଆଉ ବାହାରେ କେତେ, ବିଲେଇ ଦେଖୁଥାଉଁ । ତାକୁ କିଏ କହେ 'ବିଲେଇ ନାନୀ', ଆଉ କିଏ କହେ 'ପୁଷି ମାଉସୀ । ତା'ହେଲେ ଏ ବିଲେଇ ସବୁ ଆସିଲେ କୋଉଠୁ ? ଏ ବିଷୟରେ ମଜା ଗପଟିଏ ଅଛି । ତାହା ଏଇପରି—

ବଣରେ ବାଘ ରହୁଥାଏ । ତାକୁ ସବୁ ପଶୁ ବାଘମାମୁଁ ବୋଲି ଡ଼ାକନ୍ତି । ଥରେ ବଣର ପଶୁମାନେ ଏକାଠି ହୋଇ ବାଘକୁ ସେମାନଙ୍କ ରାଜା କରିଦେଲେ । ଏଥିରେ ବାଘମାମୁଁର ଛାତି ଫୁଲିଗଲା । ଏତେ ବଡ଼ ବଣ ମୁଲକର ରାଜା ସେ । ତା

ତଳେ ଲକ୍ଷ ଲକ୍ଷ ପଶୁ । ସେ ଯାହା କହିବ, ସେମାନେ ତାହା କରିବେ । ଛାତି ନ ଫୁଲିଇବ କାହିଁ ?

ବାଘର ଦୁଇଟି ଭଉଣୀ । ବଣର ପଶୁମାନେ ସେମାନଙ୍କୁ 'ରଜାଘର ମାଉସୀ' ବୋଲି ଡ଼ାକନ୍ତି । ରାଜାଙ୍କ ଭଉଣୀ ହୋଇଥିବାରୁ ସେମାନଙ୍କ ବଡ଼ାଇ କ'ଣ କମ୍ । କଥା କଥାକେ ଅନ୍ୟ ପଶୁମାନଙ୍କୁ ହୁକୁମ ଦେଉଥିବେ ।

ବାଘମାମୁଁଙ୍କ ବଡ଼ ଭଉଣୀର ବାହାଘର ହେବ । ସେଥିପାଇଁ ବର ଖୋଜା ଚାଲିଲା । ବାଘମାମୁଁ ବିଲୁଆକୁ ଏଥିପାଇଁ ପଠାଇଲେ ବିଲୁଆ ଆଉ ଗୋଟିଏ ବଣର ବାଘକୁ ସାଥିରେ ଧରି ଆସିଲା ।

ବାହାଘର କଥା ଉଠିଲା । ବରବାଘ କହିଲା— ତମ ଭଉଣୀକୁ ବାହା ହେବାକୁ ମୁଁ ରାଜି ଅଛି । ହେଲେ ମୋ କନିଆ ସହିତ ମୁଁ ଏକୁଟିଆ ଟିକେ କଥା ହେବି । ତାପରେ ବାହାଘର ପକ୍କା କରିଦେବା ।

ବାଘମାମୁଁ ଭଉଣୀକୁ ବରବାଘ ପାଖରେ ଛାଡ଼ିଲେ । ବରବାଘ ତା କନିଆ କାନରେ ଥିରି ଥିରି କହିଲା—ଦେଖ, ମୁଁ ତୁମ ଭାଇକୁ ଯଉତୁକ ମାଗିବି । ତମେ ବି ଭାଇକୁ ମୁଁ କହିଲି ଭଳି କହିବ । ସେମିତି ହେଲେ ବାହା ହୋଇ ଆମେ ମଜାରେ ରହିବା ।

ତାପରେ ବରବାଘ ବାଘମାମୁଁଙ୍କୁ କହିଲା—ମୋତେ ଯଦି ତମ ରାଇଜର ଦକ୍ଷିଣ ପଟଟା ଯଉତୁକ ଦେବ, ତେବେ ଯାଇ ମୁଁ ତମ ଭଉଣୀକୁ ବାହା ହେବି ।

ସେ ବଣର ଉତ୍ତର ପଟେ ସବୁ ଶିକାରୀ ପଶୁ ରହୁଥିଲେ । ସେମାନେ ହେଲେ ବାଘମାମୁଁ, ସିଂହ, ଗଧିଆ, କୁକୁର, ବିଲୁଆ, ନେଉଳ ଆଦି ପଶୁ । ଦକ୍ଷିଣ ପଟେ ଘାସ, ପତ୍ର, ଫଳ, ମୂଳ ଖାଉଥିବା ପଶୁମାନେ ରହୁଥିଲେ । ସେମାନେ ହେଲେ ହାତୀ, ଘୋଡ଼ା, ଗୋରୁ, ହରିଣ, ଠେକୁଆ ଆଦି ପଶୁ । ଉତ୍ତର ପଟର ଶିକାରୀ ପଶୁମାନେ ଦକ୍ଷିଣ ପଟକୁ ଯାଇ ଶିକାର କରୁଥିଲେ । ଦକ୍ଷିଣ ପଟଟା ଯଉତୁକ ଦେଲେ ଶିକାର ମିଳିବ କିପରି ?

ବାଘମାମୁଁ ଏବେ ଧର୍ମ ଅଡୁଆରେ ପଡ଼ିଲେ । ହଁ କଲେ ଖାଇବାକୁ ପାଇବେ ନାହିଁ । ନାହିଁ କଲେ ଭଉଣୀ ବାହା ହୋଇପାରିବ ନାହିଁ । ସେ ଭଉଣୀକୁ ପଚାରିଲେ—ଯଉତୁକ ବିଷୟରେ ତୁ କ'ଣ କହୁଛୁ ?

ରଜାଘର ମାଉସୀ କହିଲା—ବାହାଘରେ ଯଉତୁକ କିଏ ନ ଦେଉଛି ? ତମ ଭଉଣୀଠେଇଁ ଆଦର ଥିଲେ ଦେବ । ତା' ନ ହେଲେ ବାହାଘର ବନ୍ଦ ହେଲା ବୋଲି ଜାଣ ।

ବାଘମାମୁଁ ଧନ୍ଦେଇରେ ପଡ଼ିଗଲେ । ତାହା ଦେଖି ନେଉଳ ତାଙ୍କ କାନ ପାଖରେ ଚୁପ୍ ଚୁପ୍ କହିଲା—ହଜୁର, ଆପଣ ରାଜି ହୁଅନ୍ତୁ । ବରବାଘଟା ଭାରି ଲୋଭୀ । ରଜାଘର ମାଉସୀ ବି କମ୍ ଲୋଭୀ ନୁହେଁ । ଏ ଦୁହିଁଙ୍କୁ ମୁଁ ବୁଦ୍ଧି ଶିଖାଇଦେବି । ଆପଣ ଯଉତୁକ ଦେବାକୁ ହଁ କରନ୍ତୁ ।

ବାଘମାମୁଁ ବିର କଥାରେ ରାଜି ହେଲେ । ତାପରେ ବାହାଘର ହେଲା । ରଜାଘର ଭୋଜି । ଭଲ ଭଲକା ଜିନିଷଅଁଆ ହୋଇଥାଏ ।

ଯିଏ ଯାହା ଚାହିଁଲା, ଖାଇଲା । ନାଚଗୀତରେ ବଣସାରା ଦୁଲୁକି ଉଠିଲା । ନ ହେବ କିଆଁ ? ସେ ତ ଫେର୍ ତମ ଆମ ଘର କଥା ନୁହ । ଖୋଦ୍ ରଜାଘର କଥା । ବଡ଼ ଘରର ପରା ସବୁ କଥା ବଡ଼ !

ସେଇ ବଣରେ ଗୋଟିଏ କୁହୁକ ଗଛ ଥାଏ । ନେଉଳ ସେଇଟିକୁ ଚିହ୍ନି ରଖିଥାଏ । ତା' ପତ୍ର ଯିଏ ଖାଇବ, ସେ ଅତି ଛୋଟ ହୋଇଯିବ । ନେଉଳ ଗୋଟିଏ ଛେଳିକୁ ଡାକି ସେଇ ପତ୍ର ଖାଇବାକୁ ଦେଲା । ତାହା ଖାଇ ଛେଳିଟା ମୂଷା ଆକାରର ହୋଇଗଲା ।

ତାହାପର ପର ଦିନ ନେଉଳ ରଜାଘର ବର କନିଆଙ୍କୁ ସାଥିରେ ବୁଲେଇ ନେଲା । ସେ ସେଇ ଛୋଟ ଛେଳିଟିକୁ ଦେଖାଇ କହିଲା—ଏଇଟି ଆମ ରାଇଜର ସବୁଠାରୁ ଭଲ ଶିକାର ।

ବରବାଘ କହିଲା—ମୁଁ ତ ଏମିତି ପଶୁ କେଉଁଠି ଦେଖିନି । ମୂଷା ଭଳି ହୋଇଛି, ଛେଳି ଭଳି ଦିଶୁଛି ।

ନେଉଳ କହିଲା—ଏଇଟି କେବଳ ଆମ ରଜାଘର ଶିକାର । ଯାର ମାଂସ ଏମିତି ସୁଆଦିଆ, ତାହା ଖାଇଲେ ଯାଇଁ ସତ ବୋଲି ଜାଣିବ । ତମେ ଦିହେଁ ଏ ଛେଳିଟାକୁ ଜଳଖିଆ କର ।

ବରବାଘ ଓ କନିଆ ବାଘ ଛେଳିକୁ ଦି' ଗଡ଼ କରି ବାଣ୍ଟି ଖାଇଲେ । ଆଶ୍ଚର୍ଯ୍ୟ କଥା ! ଖାଉ ଖାଉ ଦିହେଁ ଅତି ଛୋଟ

ହୋଇଗଲେ । ବାଘ ଭଳି ଦିଶୁଛି । ହେଲେ ସେମାନଙ୍କୁ ବାଘ ବୋଲି ଆଉ କେହି କହିବନି ।

ନେଉଳ କହିଲା—ଯଉତୁକ ନେବ ପରା ? ଚାଲ ଆମ ରଜାଘରକୁ । ଭଉଣୀ ଆଉ ଭିଣୋଇକୁ ଦେଖି ସତରେ ଆମ ରାଜା ଭାରି ଖୁସି ହେବେ ।

ବରବାଘ ଆଉ କନିଆବାଘ ଲାଜରେ ମୁଣ୍ଡ ତଳକୁ କରିଦେଲେ । ଏ ରୂପରେ ଆଉ ଯିବେ କୋଉଠିକି ? ସେଠୁ ଚୁପ୍‌କିନା ଖସି ଯାଇ ବଣରେ କୁଆଡ଼େ ଲୁଚିଗଲେ । ସେମାନେ ଆଉ ଏକ ଜାତିର ପଶୁ ହୋଇଗଲେ । ସେମାନେ ପିଲାଛୁଆ କଲେ । ଦିନକୁ ଦିନ ସେମାନଙ୍କ ବଂଶ ବଢ଼ିବାକୁ ଲାଗିଲା ।

ବଣର ପଶୁମାନେ ସେମାନଙ୍କୁ ବିଲେଇ ନାଁ ଦେଲେ । ସେମାନଙ୍କ ଭିତରୁ କେତେ ବଣରେ ରହିଲେ । ଆଉ କେତେ ବିଲେଇ ମଣିଷମାନଙ୍କ ଘରେ ରହିଲେ । ଘରୁଆ ବିଲେଇମାନଙ୍କୁ ପିଲାମାନେ ଆଦରରେ 'ପୁଷି ମାଉସୀ' କି 'ବିଲେଇ ନାନୀ' ବୋଲି ଡାକିବାକୁ ଲାଗିଲେ ।



# ଏହି ସଂସ୍ଥାର କେତୋଟି ଶିଶୁ ଉପଯୋଗୀ ପୁସ୍ତକ

---

ଆମ ଜଗାବଳିଆ
ମହାନ୍ ଜ୍ୟୋତି ମହାତ୍ମାଗାନ୍ଧୀ
ସପ୍ତ ଜନନାୟକ
ସପ୍ତ ଜନନାୟିକା
ସପ୍ତ ସାରଥି
ମୋ ଦେଶ ମୋ ମାତୃଭୂମି
ଏଇ ମୋ ପ୍ରିୟ ଜନମ ଭୂଇଁ
ଆକାଶର ଝିକି ତାରା (ଶିଶୁକବିତା)
ପାରିବା ପିଲା
ସାହାସୀ ପିଲା
ଆମ କାହାଣୀ
ପିଲାଙ୍କ ଯଦୁମଣି
କୁହୁକ ଗଳ୍ପମାଳା
ଶହୀଦ ଲକ୍ଷ୍ମଣ ନାୟକ
ହାୟରେ ରସଗୋଲା
ଉତ୍କଳମଣି ଗୋପବନ୍ଧୁ
ଭକ୍ତ ଗ୍ରନ୍ଥମାଳା
ଯଦୁମଣିଙ୍କ ଯାଦୁମୁଣି
ବୈଜ୍ଞାନିକ ଯାଦୁକର
ହାତୀ ଲାଗି ହଟହଟା

ମହାଯୋଗୀ ଶ୍ରୀ ଅରବିନ୍ଦ
ପିଲାଙ୍କ ଗପ
ସକଳ ଦେହେ ନାରାୟଣ
ଭି. ଭି. ଗିରି
ରାଜପୁତ କାହାଣୀ
ରାମକୃଷ୍ଣ କଥା ଓ କାହାଣୀ
ଆମ ହିତକର ଗପ
ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ
ରଜାଙ୍କ ଖଜାଖିଆ କଥା
ଅଜାଙ୍କ ନାସ ଖିଆ କଥା
ନେତାଜୀ ସୁଭାଷ
ଜୀବ ଜଗତର ଅଜପ ଗପ (୧ମ)
ଯୁଗେ ଯୁଗେ ନାରୀ
କଲମ୍ବସ (ଶିଶୁ ଏକାଙ୍କିକା)
ଠକ ରାଜା
ଲାଲବାହାଦୁର ଶାସ୍ତ୍ରୀ
ବିବେକାନନ୍ଦ
ବୁଢ଼ା ହନୁ
ତିନି ଶୁଆ କଥା
ଅଲଣା ଗାଁର ଫଲଣା ପାଲି